# ଉତ୍କଳ ଗୌରବ ମଧୁସୂଦନ



ରାଜ୍ୟ ଜନଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଜନଶିକ୍ଷା ଭବନ
ୟୁନିଟ - ୫
ଭୁବନେଶ୍ୱର - ୧

ଉତ୍କଳ ଗୌରବ ମଧୁସୂଦନ

ଲେଖିକା :
ଶ୍ରୀମତୀ କ୍ଷୀରୋଦ୍ରା ପରିଜା

ପ୍ରଥମ ମୁଦ୍ରଣ : ୧୯୯୭
ପ୍ରକାଶନ ସଂଖ୍ୟା :
ଏସ୍. ଆର. ସି. - ୨୦୦- ୩୨/୯୭
ମୁଦ୍ରଣ ସଂଖ୍ୟା : ୧୦୦୦

ପ୍ରକାଶକ :
ଡକ୍ଟର ବିମଳେନ୍ଦୁ ମହାନ୍ତି
ନିର୍ଦ୍ଦେଶକ,
ରାଜ୍ୟ ଜନ ଶିକ୍ଷା ସାଧନ କେନ୍ଦ୍ର, ଓଡ଼ିଶା
ଭୁବନେଶ୍ୱର - ୭୫୧୦୦୧

ମୁଦ୍ରାକର :
କେଦାର ପ୍ରିଣ୍ଟିଂ ପ୍ରେସ
ଭୁବନେଶ୍ୱର - ୭

ମୂଲ୍ୟ : ଟ ୩ .୫୦

UTKAL GOURAB MADHUSUDAN

Author :
**Smt. Khirodra Parija**

First Edition : 1997
Publication No. :
SRC - 200 - 32 / 97
Copies Printed : 1000

Published by :
Dr. B. Mohanty
Director,
State Resource Centre
for Adult Education
Orissa, Bhubaneswar-751 001

Printed at :
Kedar Printing Press
Bhubaneswar - 7

Price : Rs. 3.50

କଟକ ଜିଲ୍ଲାରେ ସତ୍ୟଭାମାପୁର ବୋଲି ଗାଁଟିଏ । ଏହି ଗାଁରେ ୧୮୪୮ ମସିହା ଏପ୍ରିଲ୍ ମାସ ୨୮ ତାରିଖ ଦିନ ମଧୁସୂଦନ ଜନ୍ମ ହୋଇଥିଲେ । ତାଙ୍କ ବାପାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ପାର୍ବତୀ ଦେବୀ । ବାପ ମା' ପୁଅର ନାମ ଦେଇଥିଲେ ଗୋବିନ୍ଦ ବଲ୍ଲଭ । କିନ୍ତୁ ସ୍କୁଲରେ ତାଙ୍କର ନାମ ବଦଳି ଯାଇଥିଲା । ଗୋବିନ୍ଦ ବଲ୍ଲଭ ହୋଇଥିଲେ ମଧୁସୂଦନ ଦାସ । ଓଡ଼ିଶାରେ ସେ ମଧୁ ବାରିଷ୍ଟର ନାମରେ ପରିଚିତ । ଚୌଧୁରୀ ପରିବାର ଗୋଟିଏ ନାମଜାଦା ଜମିଦାର ପରିବାର ଥିଲା । କିନ୍ତୁ ମଧୁସୂଦନ ଜନ୍ମହେଲା ବେଳକୁ ସେ ଜମିଦାର ପରିବାର ଏକ ମଧ୍ୟବିତ୍ତ ପରିବାରରେ ପରିଣତ ହୋଇସାରିଥିଲା । ବଂଶ ମର୍ଯ୍ୟାଦା ଥିଲା, କିନ୍ତୁ ଧନ ସଂପତ୍ତି ଆଗ ଭଳି ନ ଥିଲା । ମଧୁସୂଦନଙ୍କୁ ପାଠ ପଢ଼ାଇ ମଣିଷ କରିବା ପାଇଁ ତାଙ୍କ ବାପ ମା' ଯତ୍ନ ନେଇଥିଲେ ।



# ମଧୁସୂଦନଙ୍କ ପିଲାଦିନ

ମଧୁସୂଦନ ଗାଁ ଚାଟଶାଳୀରେ ପାଠ ପଢ଼ିଲେ । ଚାଟଶାଳୀ ପାଠ ଶେଷ କରି ସେ ଗାଁ ପାଖ ସ୍କୁଲରେ ପଢ଼ିଲେ । ସେଠାରେ ପାଠ ଶେଷ ହେଲା ପରେ ସେ କଟକ ଗଲେ ।

ତାଙ୍କ ବାପା ରଘୁନାଥ ଦାସ ପାର୍‌ଶି ଭାଷା ପଢ଼ିଥିଲେ । ସେ କଟକ ଅଦାଲତରେ ଓକିଲାତି କରୁଥିଲେ । ତାଙ୍କର ଇଚ୍ଛାଥିଲା ମଧୁସୂଦନ ପାଠ ପଢ଼ି କଟକ କଚିରିରେ କିରାଣୀ ହେବ ।



ଏବେ ମଧୁସୂଦନଙ୍କ ନାଁ କଟକ ଜିଲ୍ଲା ସ୍କୁଲରେ ଲେଖା ହେଲା । କଟକର ପିଲାଏ ତାଙ୍କର ମଫସଲିଆ ବେଶକୁ ଦେଖି ତାଙ୍କୁ ବହୁତ ଥଟ୍ଟା କରନ୍ତି । ତାଙ୍କ ମୁଣ୍ଡରେ ଗୋଟିଏ ଚୁଟିଥାଏ । ସାଙ୍ଗ ପିଲାମାନେ ତାଙ୍କ ଚୁଟି ଟାଣି ଦିଅନ୍ତି । ତାଙ୍କୁ ଏଥିପାଇଁ ବହୁତ ଚିଡ଼ାନ୍ତି । ଦିନେ ଚିଡ଼ାଇ ଚିଡ଼ାଇ ସାଙ୍ଗମାନେ ତାଙ୍କ ଚୁଟିଟି ମଧ କାଟିଦେଲେ । ଖାଲି ମୁଣ୍ଡରେ ଚୁଟି ନୁହେଁ, କାନରେ ମଧ ସେ ନୋଳି ନାଉଥିଲେ । ଗୋଟିଏ ତୁଳାପଶା ମିରଜାଇ କୁରୁତା ପିନ୍ଧୁଥିଲେ । ସେ କୁରୁତାରେ ବୋତାମ ନଥିଲା । ଦୁଇଟି ଫିତାରେ କୁରୁତାଟି ଦେହରେ ବନ୍ଧା ହୋଇଥିଲା । ପିଲାଦିନୁ ମଧୁସୂଦନଙ୍କ ମନ ବଡ଼ ଟାଣ । ସେ ସାଙ୍ଗପିଲାମାନଙ୍କ ଥଟ୍ଟା ପରିହାସକୁ ଖାତିର କରୁନଥିଲେ ।

## ମଧୁସୂଦନଙ୍କ ପାଠ ପଢ଼ା

ପିଲାଦିନୁ ମଧୁସୂଦନ ଥିଲେ ବିଚକ୍ଷଣ ବୁଦ୍ଧିମାନ । ତୁଳସୀ ଯେପରି ଦୁଇପତ୍ରରୁ ବାସେ, ବଡ଼ ହେଲେ ଜଣେ ବଡ଼ ମଣିଷ ହେବେ ବୋଲି ସେହିପରି ମଧୁସୂଦନଙ୍କ ପିଲାଦିନ ପାଠ ପଢ଼ାରୁ ଜଣା ପଡ଼ିଯାଇଥିଲା ।

ଥରେ ସ୍କୁଲରେ ପ୍ରଧାନ ଶିକ୍ଷକ ଇଂରାଜୀ ପଢ଼ାଉଥିଲେ । କହୁ କହୁ ସେ ଗୋଟିଏ ଇଂରେଜୀ ବାକ୍ୟର ଭୁଲ୍ ଅର୍ଥ କହିଦେଲେ । ତାହାର ସଠିକ ଅର୍ଥ ମଧୁସୂଦନ ଜାଣିଥିଲେ । ସେ ନିର୍ଭୟରେ ଠିଆ

ହୋଇ ପ୍ରଧାନ ଶିକ୍ଷକଙ୍କ ଭୁଲ୍ ଧରାଇ ଦେଲେ । ଏଥିରେ ପ୍ରଧାନ ଶିକ୍ଷକ ରାଗିଯାଇ ସ୍କୁଲ ଖାତାରୁ ତାଙ୍କ ନାମ କାଟି ଦେଲେ ।

ମଧୁସୂଦନ ଏଥିରେ ଦବିଗଲେ ନାହିଁ । ସେ'ତ କିଛି ଭୁଲ୍ କରି ନାହାନ୍ତି, ଡରିଯିବେ କାହିଁକି ? ସେ ନ୍ୟାୟ ପାଇବା ପାଇଁ ସ୍କୁଲ ବିଭାଗର ବଡ଼ ହାକିମ ହିଲ୍ ସାହେବଙ୍କ ନିକଟକୁ ଗଲେ ।

ସେତେବେଳେ ଇଂରେଜ ହାକିମଙ୍କ ପାଖକୁ ଯିବା ସହଜ କଥା ନ ଥିଲା । ଏଥିପାଇଁ ସମସ୍ତେ ଭୟ କରୁଥିଲେ । କିନ୍ତୁ ବାଳକ ମଧୁସୂଦନଙ୍କ ମନରେ ଭୟ ନ ଥାଏ । ସେ ହିଲ୍ ସାହେବଙ୍କ ପାଖକୁ ଯାଇ ତାଙ୍କୁ ସବୁକଥା ଜଣାଇଲେ । ସାହେବ ତାଙ୍କର ସତ୍ ସାହସ ଦେଖି ଖୁସି ହେଲେ । ତା'ପରଦିନ ପୁଣି ତାଙ୍କ ନାମ ସ୍କୁଲ ଖାତାରେ ଲେଖା ହେଲା ।

କଟକରେ ମାଟ୍ରିକ୍ ପାଶ୍ କରି ସେ ବାଲେଶ୍ୱର ଜିଲ୍ଲା ସ୍କୁଲରେ ଶିକ୍ଷକ ଚାକିରୀ କଲେ । କିନ୍ତୁ ଏତିକି ପାଠ ପଢ଼ି ଚାକିରୀ ଡୋରିରେ ବନ୍ଧା ହେବା ଲୋକ ସେ ନଥିଲେ । ପାଠ ପଢ଼ିବାକୁ ଯାହାର ଏତେ ଆଗ୍ରହ ସେ କେତେ ଦିନ ବା ଚାକିରୀ କରନ୍ତା ? ଦୁଇ ବର୍ଷ ପରେ ସେ ଚାକିରୀ ଛାଡ଼ି ପୁଣି ପାଠ ପଢ଼ିବାକୁ ବାହାରିଲେ ।

ସେତେବେଳେ ଓଡ଼ିଶାରେ କଲେଜ ନ ଥାଏ । କଲେଜ ପାଠ ପଢ଼ିବାକୁ, ଓଡ଼ିଶା ଲୋକେ କଲିକତା ଯାଉଥିଲେ । ବାପା ତାଙ୍କୁ କଲେଜ ପଢ଼ା ଖର୍ଚ୍ଚ ଯୋଗାଇ ପାରିବେ ନାହିଁ, ଏ କଥା ମଧୁସୂଦନ

ଜାଣିଥିଲେ । ତେଣୁ ନିଜ ଚେଷ୍ଟାରେ ପଢ଼ିବା ପାଇଁ ମନ ସ୍ଥିର କରି ସେ ଜଳପଥରେ ଷ୍ଟିମରରେ ଯାଇ କଲିକତାରେ ପହଁଞ୍ଚିଲେ ।

ନିଜ ପଢ଼ା ଖର୍ଚ୍ଚ ପାଇଁ ସେ ଟିଉସନ୍ କଲେ । କଲିକତାର ଗ୍ରିଫିନ୍‌ସ ନାମକ ଜଣେ ଖ୍ରୀଷ୍ଟିୟାନ୍ ପାଦ୍ରୀ ତାଙ୍କର ଗୁଣରେ ମୁଗ୍ଧ ହେଲେ । ସେ ତାଙ୍କୁ ବହୁତ ସାହାଯ୍ୟ କଲେ । ତାଙ୍କରି ଚେଷ୍ଟାରେ ମଧୁସୂଦନ କଲେଜରେ ପାଠ ପଢ଼ିଲେ ।

## ଖ୍ରୀଷ୍ଟ ଧର୍ମ ଗ୍ରହଣ

ଭବାନୀପୁର ଲଣ୍ଡନ ମିଶନ ସୋସାଇଟି କଲେଜରେ ପଢୁଥିବାବେଳେ ଆଲେକଜାଣ୍ଡର ଡଫ୍ ନାମକ ଜଣେ ପାଦ୍ରୀଙ୍କ ଭାଷଣ ଶୁଣି ସେ ଖ୍ରୀଷ୍ଟ ଧର୍ମ ପ୍ରତି ଆକୃଷ୍ଟ ହୋଇଥିଲେ । ତାଙ୍କ ପିତୃପରିବାର ଏକ ରକ୍ଷଣଶୀଳ ହିନ୍ଦୁ ପରିବାର । ପୁଅକୁ ଖ୍ରୀଷ୍ଟଧର୍ମ ଗ୍ରହଣ ନ କରିବା ପାଇଁ କଲିକତା ଆସି ତାଙ୍କ ବାପା ବହୁତ ବୁଝାଇ ଥିଲେ । କିନ୍ତୁ କଲିକତାର ଶିକ୍ଷିତ ତରୁଣ ବଙ୍ଗୀୟମାନଙ୍କ ମଧ୍ୟରେ ସେତେବେଳେ ଖ୍ରୀଷ୍ଟଧର୍ମ ପ୍ରତି ଏକ ପ୍ରକାର ଆକର୍ଷଣ ବଢ଼ି ଯାଇଥିଲା । ଧର୍ମ ନାମରେ ସେ ସମୟରେ ହିନ୍ଦୁ ଧର୍ମରେ ନାନା ପ୍ରକାର କୁସଂସ୍କାର ବ୍ୟାପୀ ରହିଥିଲା । ପାଠ ପଢୁଆ ଯୁବକମାନେ ସେଥିପାଇଁ ହିନ୍ଦୁ ଧର୍ମ ବଦଳରେ ଖ୍ରୀଷ୍ଟଧର୍ମକୁ ଅଧିକ ପସନ୍ଦ

କରୁଥିଲେ । ଏହି କାରଣରୁ ବାପାଙ୍କ ବିରୋଧ ସତ୍ତ୍ୱେ ମଧୁସୂଦନ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ ।

ମଧୁବାବୁ ଲଣ୍ଡନ ମିଶନାରୀ ସୋସାଇଟି କଲେଜରୁ ୧୮୬୮ ମସିହାରେ ଏଫ,ଏ; ୧୮୭୦ ମସିହାରେ ବି,ଏ. ଏବଂ ଫ୍ରିଚର୍ଚ୍ଚ ଇନ୍‌ଷ୍ଟିଚ୍ୟୁଟ୍‌ରୁ ଇଂରେଜିରେ ଏମ୍, ଏ, ପାଶ କରିଥିଲେ । ସେ କଲିକତା ବିଶ୍ୱବିଦ୍ୟାଳୟରୁ ୧୮୭୮ ମସିହାରେ ବି, ଏଲ· ପାଶ୍ କରିଥିଲେ । ଏହି ପରି ଭାବରେ ସେ ଥିଲେ ବି,ଏ, ଏମ,ଏ,ଏବଂ ଆଇନ ଶାସ୍ତ୍ରରେ ସ୍ନାତକ ଡ଼ିଗ୍ରୀ ଲାଭ କରିଥିବା ପ୍ରଥମ ଓଡ଼ିଆ ।

ଅଭାବ ଓ ଅସୁବିଧା ପାଠ ପଢ଼ାର ରାସ୍ତାରେ କଣ୍ଟା ହୋଇ ପାରେ ନାହିଁ । ମନ ଥିଲେ ଉପାୟ ଦିଶେ । ସାଧନା କଲେ ସିଦ୍ଧି ମିଳେ । ମଣିଷର ଦୁଇଟି ଆଖି ଅଛି । ପାଠ ହେଉଛି ତାର ତୃତୀୟ ଆଖି । ସେଇ ଆଖିରେ ସେ ନ ଦେଖିଲା କଥାକୁ ଦେଖି ପାରେ । ଅଜଣା ଜିନିଷକୁ ଜାଣିପାରେ । ପାଠୁଆ ନ ହେଲେ କୌଣସି ଜାତି ଉପରକୁ ଉଠିପାରେ ନାହିଁ । ସେଥିପାଇଁ ଓଡ଼ିଆ ଜାତିକୁ ଉଠାଇବା ପାଇଁ ନିଜେ ଅଧିକ ପଢ଼ିବା ସହିତ ଅନ୍ୟ ସମସ୍ତେ କେମିତି ପାଠ ପଢ଼ିବେ, ସେଥିପ୍ରତି ମଧୁସୂଦନ ଧ୍ୟାନ ଦେଇଥିଲେ ।

ମଧୁବାବୁ ପନ୍ଦର ବରଷ କାଳ କଲିକତାରେ ରହିଥିଲେ । ସେଠାରେ ସେ ଓକିଲାତି କରୁଥିଲେ । ସେଠାରେ ମଧ୍ୟ ସୌଦାମିନୀ

ନାମକ ଜଣେ ବଙ୍ଗାଳି ଝିଅକୁ ବାହା ହୋଇଥିଲେ । ଆଗରୁ ସେ ଖ୍ରୀଷ୍ଟ ଧର୍ମ ଗ୍ରହଣ କରିଥିଲେ ବୋଲି ତାଙ୍କ ଉପରେ ତାଙ୍କ ବାପା ଖୁବ୍ ରାଗିଥିଲେ । ତାଙ୍କୁ ତ୍ୟାଜ୍ୟ ପୁତ୍ର କରି ଦେଇଥିଲେ । ତେଣୁ ବାପାଙ୍କ ସହିତ ତାଙ୍କର ଏକ ପ୍ରକାର ସଂପର୍କ ତୁଟି ଯାଇଥିଲା । କିଛି ଦିନ ପରେ ତାଙ୍କ ସ୍ତ୍ରୀ ସୌଦାମିନୀ ମଧ ଅକାଳରେ ପରଲୋକ ଗମନ କଲେ । ମଧୁସୂଦନ ପୂରାପୂରି ଏକୁଟିଆ ହୋଇଗଲେ ।



କଲିକତାରେ ପାଠ ପଢୁଥିବାବେଳେ ସେ ଓଡ଼ିଶାର ଲୋକମାନଙ୍କ ଖବର ରଖୁଥିଲେ । ସେତେବେଳେ ଓଡ଼ିଶା ଅଲଗା ପ୍ରଦେଶ ହୋଇ ନଥିଲା । କଲିକତାରୁ ଯେଉଁ ବଙ୍ଗାଳୀ ରାଜ-କର୍ମଚାରୀମାନେ ଯାଇ ସେଠାରେ ଶାସନ କାର୍ଯ୍ୟ ପରିଚାଳନା କରୁଥିଲେ ସେମାନଙ୍କର ଓଡ଼ିଆ ଲୋକଙ୍କ ପ୍ରତି କୌଣସି ସହାନଭୂତି ନଥିଲା । ଇଂରେଜ ସରକାରଙ୍କୁ ସେମାନେ ଭୁଲ ଖବର ଦେଉଥିଲେ । ୧୮୬୬ ମସିହାରେ ଯେଉଁ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା, ସେ ସମୟରେ ଖାଇବାକୁ ନପାଇ ଲକ୍ଷ ଲକ୍ଷ ଲୋକ ମଲେ । ଏହି ଅଣ ଓଡ଼ିଆ ସରକାରୀ କର୍ମଚାରୀମାନେ ଇଂରେଜ ସରକାରଙ୍କୁ ସଠିକ୍ ହିସାବ ନଦେବା ଫଳରେ ଅନ୍ୟ ରାଜ୍ୟରୁ ଖାଦ୍ୟ ପଦାର୍ଥ ଓଡ଼ିଶା ଆସି ପାରି ନଥିଲା । ଅବସ୍ଥା ଅସମ୍ଭାଳ ହୋଇ ପଡ଼ିଲା । ଅଖାଦ୍ୟ ଖାଇ, ଅନାହାରରେ ରହି କୁଢ଼ କୁଢ଼ ଲୋକ ପୋକ ମାଛି ପରି ମଲେ । ଓଡ଼ିଆ ଜାତିର ଇତିହାସରେ ଏଭଳି ଅକାଳ ମଡ଼କ ଆଉ କେବେ ଦେଖାଯାଇ ନଥିଲା ।

ଦୁର୍ଭିକ୍ଷ ସାଙ୍ଗକୁ ଆଉ ଗୋଟିଏ ବିପତ୍ତି ମଧ୍ୟ ଦେଖାଗଲା । ଓଡ଼ିଶାରେ ଥିବା କେତେଜଣ ବଙ୍ଗାଳୀ ଶିକ୍ଷକ ଓ ଶିକ୍ଷା ବିଭାଗ କର୍ମଚାରୀ ଓଡ଼ିଆ ଭାଷା ବଦଳରେ ଓଡ଼ିଶାରେ ବଙ୍ଗଳା ଭାଷା ଚଳାଇବା ପାଇଁ ଷଡ଼ଯନ୍ତ୍ର କରିଥିଲେ । ବାଲେଶ୍ୱର ସ୍କୁଲର ଜଣେ ବଙ୍ଗାଳୀ ପଣ୍ଡିତ "ଓଡ଼ିଆ ଗୋଟିଏ ସ୍ୱତନ୍ତ୍ର ଭାଷା ନୁହେଁ" ବୋଲି

ଖଣ୍ଡେ ବହି ଲେଖି ପ୍ରକାଶ କଲେ । ଏହା ବିରୁଦ୍ଧରେ ସାରା ଓଡ଼ିଶାରେ ଜନଜାଗରଣ ଦେଖାଦେଲା । ଏ ସବୁ ଖବର ପାଇ ମଧୁସୂଦନ ବଡ଼ ବିଚଳିତ ହୋଇ ପଡ଼ିଥିଲେ । ଓଡ଼ିଆ ଲୋକେ ଏପରି ଦୁଃଖ କଷ୍ଟ ଭିତରେ ଚଳୁଥିବା ବେଳେ ସେ ଓକିଲାତି କରି କଲିକତାରେ ଆରାମରେ ରହିବାକୁ ପସନ୍ଦ କଲେ ନାହିଁ । ୧୮୮୦ ମସିହାରେ ସେ ଓଡ଼ିଶା ଫେରି ଆସିଲେ । କଲିକତାରେ ପଢୁଥିବାବେଳେ ଜଣେ ବଙ୍ଗାଳୀ ବ୍ରାହ୍ମଣ ଛାତ୍ର ତାଙ୍କର ବନ୍ଧୁ ଥିଲେ । ତାଙ୍କର ଦୁଇଟି ଝିଅ ଥିଲେ । ସୁଧାଂଶୁ ବାଳା ଓ ଶୈଳବାଳା । ବଂଧୁଙ୍କର ମୃତ୍ୟୁ ହେବାରୁ ମଧୁସୂଦନ ସେ ଦୁଇ ଝିଅଙ୍କୁ ନିଜ ପାଖକୁ ନେଇଗଲେ । ତାଙ୍କର ନିଜର କୌଣସି ପିଲାପିଲି ନଥିଲେ । ତେଣୁ ସେ ଶୈଳବାଳାଙ୍କୁ ନିଜର ଝିଅ ଭଳି ପାଳି ପୋଷି ମଣିଷ କରିଥିଲେ ।

କଟକରେ ମଧୁବାବୁ ଓକିଲାତି ଆରମ୍ଭ କରିଥିଲେ । ସେ ଥିଲେ ଜଣେ ବିଚକ୍ଷଣ ଓକିଲ । ନିଜ ଓକିଲାତି ଜ୍ଞାନ ଓ ଉପସ୍ଥିତ ବୁଦ୍ଧି ବଳରେ ସେ ହାରିବା ମକଦ୍ଦମାରେ ଜିଣିଯାଉଥିଲେ । ଏଥିପାଇଁ ତାଙ୍କ ସାଙ୍ଗରେ ମକଦ୍ଦମା ଲଢ଼ିବାକୁ ଅନ୍ୟ ଓକିଲମାନେ ସହଜରେ ରାଜି ହେଉ ନଥିଲେ ।

ଏମିତି ଗୋଟିଏ ମକଦ୍ଦମା କଥା । ଏହା ଥିଲା ଗୋଟିଏ ଫୌଜଦାରୀ ମକଦ୍ଦମା । ଗୋଟିଏ ପକ୍ଷ ଅପର ପକ୍ଷକୁ କୁରାଢ଼ିରେ ହାଣି ଦେଇଥିବାରୁ ଜଣେ ଲୋକ ମରି ଯାଇଥାଏ । ମଧୁବାବୁ ଏ

ମକଦ୍ଦମାଟିକୁ ହାତକୁ ନେଇଥାନ୍ତି । ସେ ଥାଆନ୍ତି କୁରାଡ଼ିରେ ହାଣି ଦେଇଥିବା ଆସାମୀ ପକ୍ଷର ଓକିଲ । ଜଜ୍ ସାହେବଙ୍କ ଆଗରେ ଜବାବ ସୁଆଲ ଚାଲିଥାଏ । ଅନ୍ୟ ପକ୍ଷର ଓକିଲ ସାକ୍ଷୀମାନଙ୍କୁ ଗୋଟି ଗୋଟି କରି ଜେରା କଲେ । କିନ୍ତୁ ମଧୁବାବୁ ବିପକ୍ଷ ସାକ୍ଷୀମାନଙ୍କୁ ଜେରା କରୁନଥାନ୍ତି । ସେମାନେ ନିଜର ବୟାନ ଦେଇ ଚାଲି ଯାଉଥାଆନ୍ତି ।



ଲୋକମାନେ ଭାବୁଥାନ୍ତି ଏଥିରେ ଆଉ କଣ ଅଛି ? ଲୋକଟାତ ମରିଛି । ସାକ୍ଷୀମାନେ ତ ଆଖିରେ ଦେଖିଥିବା କଥା କହିଲେ । ମଧୁବାବୁ ସବୁ ଶୁଣିଲେ । କାହାକୁ ପଦେ ଜେରା କଲେ ନାହିଁ । ତେଣୁ ସେ ଏ ମକଦ୍ଦମାରେ ନିଶ୍ଚୟ ହାରିବେ, ତାଙ୍କର ମହକିଲ ଫାଶୀ ଖୁଣ୍ଟରେ ଚଢ଼ିବ ।

ସବୁ ବୟାନ ସରିଲା । ଏବେ ଶେଷ ବୟାନ ଦେବେ ଡାକ୍ତର । ଡାକ୍ତର ବାବୁ ରିପୋର୍ଟ କାଗଜ ହାତରେ ଧରି କହିଗଲେ "ମୃଦାଲା କୁରାଢ଼ିରେ ଚୋଟ ମାରିବାରୁ ଲୋକଟିର ମୁଣ୍ଡରେ ଅମୁକ ଅମୁକ ହାଡ଼ରେ ମାଡ଼ ବସିଲା । ଫଳରେ ସେ ମରିଗଲା ।"

ଏ କଥା ଶୁଣି ମଧୁବାବୁ ନିଜ ଆସନରୁ ଉଠିପଡ଼ିଲେ । ସେ ଡାକ୍ତରଙ୍କୁ ଜେରା କରିବାକୁ ଉଠିବାରୁ ଅନ୍ୟ ଓକିଲମାନେ ତାଙ୍କର କାମ ଦେଖି ହସିଲେ । ମଧୁବାବୁ ଗୋଟିଏ ଥଳିରୁ ମଣିଷ ମୁଣ୍ଡର ଖପୁରି ବାହାର କଲେ । ତାପରେ ଡାକ୍ତରଙ୍କୁ ଜେରା କଲେ "ଏବେ କୁହନ୍ତୁ ମୁଣ୍ଡର କୋଉ କୋଉ ହାଡ଼ରେ କୁରାଢ଼ି ଚୋଟ ବାଜିଲା ।" ଡାକ୍ତର ବେପରୁଆ ଭାବରେ ହାଡ଼ର ନାଁ କହିଗଲେ । ମଧୁସୂଦନ ଶରୀର ବିଜ୍ଞାନ ବହି ବାହାର କରି ତାଙ୍କ କଥାକୁ ସଂଶୋଧନ କରୁଥାନ୍ତି । ସେ ଗୋଟିଏ ନାଲି ପେନ୍‌ସିଲ ଡାକ୍ତରଙ୍କ ହାତକୁ ବଢ଼େଇଦେଲେ । ତାଙ୍କୁ କହିଲେ, "ତମ କହିବା ଅନୁସାରେ କୋଉ କୋଉ ହାଡ଼ରେ ଚୋଟ ବାଜିଛି ଗାର ପକାଅ ।" ଡାକ୍ତର

ଭୁଲହାତ୍‌ରେ ଗାର ପକାଇବାରୁ ମଧୁସୂଦନ ତାହା ସଂଶୋଧନ କରାଉଥାନ୍ତି । ସଂଶୋଧନପରେ ଗାରଟି କୁରାଢ଼ି ଚୋଟ ପରି ନ ହୋଇ କରମଙ୍ଗିଆ ହୋଇଗଲା ।

ତାହା ଦେଖି ଡାକ୍ତରଙ୍କ ମୁଣ୍ଡ ନଇଁ ଗଲା । ସେ ମିଛ ରିପୋର୍ଟ ଦେଇଥିଲେ ବୋଲି ମଧୁବାବୁ ପ୍ରମାଣ କରାଇ ଦେଲେ । ସେ ମକଦ୍ଦମା ଜିତିଲେ । ଲୋକେ ତାଙ୍କର ବିଚକ୍ଷଣ ବୁଦ୍ଧି ଦେଖି ତାଙ୍କୁ ଧନ୍ୟ ଧନ୍ୟ କଲେ ।

## ଅସହାୟର ସହାୟ

ସେତେବେଳେ ମଟର ଗାଡ଼ିର ଚଳାଚଳ ଏତେ ନ ଥିଲା । ଲୋକେ ସବାରି ପାଲିଙ୍କିରେ ଯିବା ଆସିବା କରୁଥିଲେ । ଧନୀ ଲୋକେ ଘୋଡ଼ା ଗାଡ଼ି ଚଢୁଥିଲେ । କଥାରେ ଅଛି :-

"ଘର ପୋଡ଼ିଠାରୁ ବିପତ୍ତି ନାହିଁ,
ଘୋଡ଼ା ଚଢ଼ାଠାରୁ ସମ୍ପତ୍ତି ନାହିଁ ।"

ମଧୁବାବୁ ଗୋଟିଏ କାଳିଆ ଘୋଡ଼ା ଚଢୁଥିଲେ । ଦିନକର କଥା । ସେ ତାଙ୍କର ବୈଠକଖାନାରେ ବସିଥାନ୍ତି । ଗୋଟିଏ ମଫସଲି ବୁଢ଼ୀ ସେଠାରେ ପହଂଚିଲା । ବୁଢ଼ୀ ତାଙ୍କୁ କହିଲା ସେ ମଧୁବାବୁଙ୍କ ସହିତ ଦେଖା କରିବାକୁ ଆସିଛି ।

ମଧୁବାବୁ ସେତେବେଳେ ବଡ଼ ନାମଜାଦା ଓକିଲ । ତାଙ୍କ ନିକଟକୁ ଧନୀ ଲୋକେ ଓ ରାଜା ମହାରାଜା ଜମିଦାର ଆଦି ବଡ଼ ବଡ଼ ଲୋକମାନେ ମକଦ୍ଦମା କରିବା ପାଇଁ ଆସନ୍ତି । ଏ ଗରିବ ବୁଢ଼ୀଟି ଏକୁଟିଆ ତାଙ୍କ ପାଖକୁ ଯିବାକୁ ସାହସ କଲା କେମିତି ?

ବୁଢ଼ୀଟି ଶୁଣିଥିଲା ମଧୁବାବୁ ଗରିବମାନଙ୍କୁ ବହୁତ ସାହାଯ୍ୟ କରନ୍ତି । ସେ ତାଙ୍କୁ ପଚାରିଲା, "ମଧୁବାବୁ କାହାନ୍ତି ? ମୁଁ ତାଙ୍କୁ ମୋ ଦୁଃଖ ଜଣାଇବାକୁ ଆସିଛି ।" ଏହା ଶୁଣି ସେ ତାଙ୍କର ପରିଚୟ ଦେଇ କହିଲେ , " ମୁଁ ସେହି ମଧୁବାବୁ । ତମର ଯାହା କହିବାର ଅଛି କହ । "

ବୁଢ଼ୀଟି କାନ୍ଦି କାନ୍ଦି କହିଲା, ସେ ବଡ଼ ନିଆଶ୍ରୀ । ତାର ଖଣ୍ଡେ ବୋଲି ଜମି । ସେଥିରୁ ଯାହା ଫସଲ ହୁଏ ସେ ସେଥିରେ ସୁଖେ ଦୁଃଖେ ଚଳେ । ଏବେ ଜମିକୁ ଗାଁର ମୁଖିଆ ଲୋକେ ମାଡ଼ି ବସିଛନ୍ତି । ସେମାନଙ୍କ ସହିତ ଲଢ଼ିବାକୁ ତା'ର ବଳ ନାହିଁ । ତେଣୁ ସେ ତାଙ୍କ ପାଖକୁ ଆସିଛି ।

ବୁଢ଼ୀର ସାହସ ଦେଖି ମଧୁବାବୁ ବହୁତ ଖୁସିହେଲେ । ତାର ଜମି ବିଷୟରେ ଭଲ କରି ବୁଝିଲେ । ଜମିଟି ରାସ୍ତା କଡ଼ରେ ବୋଲି ଜାଣିଲେ । ତା'ପରେ ସେ ବୁଢ଼ୀକି ଗାଁ କୁ ଫେରି ଯାଇ ନିଜ ଜମିରେ ରାସ୍ତା କଡ଼କୁ ଲଗାଇ ଗୋଟିଏ ନାଳ ଖୋଳିବାକୁ କହିଲେ । ମଧୁବାବୁ ତାଙ୍କ ଗାଁକୁ ଯିବେ । ସବୁ କଥା ବୁଝିବେ । କିନ୍ତୁ ଏ କଥା ସେ କାହାରି ଆଗରେ କହିବ ନାହିଁ ।

ବୁଢ଼ୀ ତାଙ୍କ କଥାମାନି ଗାଁକୁ ଯାଇ ତା'ଜମିରେ ଗୋଟିଏ ବଡ଼ ନାଳ ଖୋଳିଲା । ତା'ପରଦିନ ମଧୁବାବୁ କାଳିଆ ଘୋଡ଼ାରେ ଚଢ଼ି ତାଙ୍କ ଗାଁକୁ ଗଲେ । ଗାଁ ଦାଣ୍ଡରେ ପହଞ୍ଚି ଚଡ ପାଟି କରି ଲୋକମାନଙ୍କୁ ଡାକିଲେ । ଗରଜନ କରି କହିଲେ,"ଯୋଉ ଜମିରେ ଏଡ଼େ ବଡ଼ ନାଳ ଖୋଳା ହୋଇଛି ସେ ଜମି କାହାର ? ସେ ନାଳରେ ପଡ଼ି ମୋ ଘୋଡ଼ାର ଗୋଡ଼ ଜଖମ ହେଲା ।"

ମଧୁବାବୁ ଆସିଛନ୍ତି ଶୁଣି ଲୋକେ ଡରି ଯାଇଥାନ୍ତି । ତାଙ୍କ ଘୋଡ଼ାର ଗୋଡ଼ ଯେ ଜଖମ କରିଛି ସେ ଦୋଷୀ । ତେଣୁ ସେମାନେ କହିଲେ, "ସେ ଜମି ଗୋଟିଏ ବୁଢ଼ୀର । ବୁଢ଼ୀ ତା' ଜମିରେ ପାଣି ମଡ଼ାଇବାକୁ ଗାତ ଖୋଳିଛି ।"

ମଧୁବାବୁ କହିଲେ "ତୁମେମାନେ ଗୋଟିଏ କାଗଜରେ ଲେଖି ଦିଅ ସେ ଜମିଟି ବୁଢ଼ୀର ।" ଲୋକମାନେ ବୁଢ଼ୀକି ସଜା ମିଳିବ ବୋଲି ଖୁସି ହୋଇ ତାହା ଲେଖିଦେଲେ । ମଧୁବାବୁ ସେମାନଙ୍କଠାରୁ କାଗଜରେ ଦସ୍ତଖତ କରାଇ ନେଲେ । ତା'ପରେ ବୁଢ଼ୀକି ଡକାଇ ପଠାଇଲେ ।

ବୁଢ଼ୀକି ସଜା ମିଳିବ ବୋଲି ଲୋକମାନେ ଚାହିଁଥାନ୍ତି । ମଧୁବାବୁ ବୁଢ଼ୀକି କାଗଜଟି ଦେଲେ । ତାକୁ କହିଲେ, "ଏଣିକି ତୁମର ଜମି ତୁମର ହେଲା, ତୁମେ ନିଜ ଜମିକୁ ଚାଷ କର ।" ମଧୁବାବୁଙ୍କ ବୁଦ୍ଧି ଓ କୌଶଳ ଦେଖି ଗାଁ ଲୋକେ କାବା ହୋଇଯାଇଥିଲେ ।

ତାଙ୍କର ଚତୁରତା ବିଷୟରେ ଏମିତି ବହୁ କାହାଣୀ ପ୍ରଚଳିତ ଅଛି । ସେଥିରୁ ଆଉ ଗୋଟିଏ ହେଲା ସେ କଲିକତାରୁ କଟକ ଆସିଥାନ୍ତି । କଟକ ଓକିଲାତି ଖାନାରେ ସେ ନୂଆ ଓକିଲ । ପୁରୁଣା ଓକିଲମାନେ ତାଙ୍କୁ ପଚାରନ୍ତି ନାହିଁ । ତାଙ୍କର ବସିବା ଜାଗା ବି ନଥାଏ । କିନ୍ତୁ ତାଙ୍କର ଓକିଲ ବୁଦ୍ଧି ଓ ଚତୁରତା କଥା ଗୋଟିଏ ମୁହଁରୁ ଅନ୍ୟ ମୁହଁକୁ ପ୍ରଚାରିତ ହୋଇ ଯାଇଥାଏ । ଥରେ ପୁରୀର ଜଣେ ମହନ୍ତଙ୍କର ମକଦ୍ଦମା କରିବାର ଥାଏ । ମହନ୍ତଙ୍କର ଗୁମାସ୍ତା ଆସି ଓକିଲଙ୍କ ସହ ପରାମର୍ଶ କରୁଥାନ୍ତି । ଗୋଟିଏ ପକ୍ଷରେ ଧନୀ ମହନ୍ତ ଗୋସେଇଁ । ଅନ୍ୟ ପକ୍ଷରେ ଜଣେ ଗରିବ ପ୍ରଜା । ଗୁମାସ୍ତା ବୁଲି ବୁଲି ଓକିଲ ଖାନାର ସବୁ ଓକିଲଙ୍କୁ ତାଙ୍କ ପକ୍ଷକୁ ନେଇଗଲେ । ମହନ୍ତଙ୍କଠାରୁ ଭଲ ପାଉଣା ମିଳିବ । ତେଣୁ ଗରିବ ପ୍ରଜାଟିର ଓକିଲ ହେବାକୁ କେହି ରାଜି ହେଲେନାହିଁ । ସବୁ ଓକିଲଙ୍କଠାରୁ ଦସ୍ତଖତ ନେବାପରେ ଗୁମାସ୍ତା ମଧୁବାବୁଙ୍କ ନିକଟକୁ ଗଲେ । ସେ ଗୁମସ୍ତାଙ୍କଠାରୁ ମକଦ୍ଦମା ବିଷୟରେ ବୁଝିଲେ । ଗୁମାସ୍ତା ଭାବିଲେ ଏତ ଛୋଟ ଓକିଲ । ନିଶ୍ଚୟ ରାଜି ହୋଇଯିବ । କିନ୍ତୁ ମଧୁସୂଦନ ରୋକ ଠୋକ ମନା କରି ଦେଲେ । ସେ ଗରିବ ଲୋକଟିର ପକ୍ଷ ନେଲେ । ସମସ୍ତେ ଭାବିଲେ ଏଇଟା ତାଙ୍କର ପାଗଳାମୀ । ଗୋଟିଏ ପଟେ ଏତେ ପୁରୁଣା ଓକିଲ ଅଛନ୍ତି, ଅନ୍ୟ ପକ୍ଷରେ ସେ ଏକା । ସେ ପୁଣି ନୂଆ ଓକିଲ । ତେଣୁ ସେ ମକଦ୍ଦମାରେ ନିଶ୍ଚୟ ହାରିବେ । କିନ୍ତୁ ସମସ୍ତଙ୍କ ଆଶଙ୍କା ବୃଥା ହେଲା । ସେ ମକଦ୍ଦମାରେ ମଧ ମଧୁବାବୁ ଜିଣି ସମସ୍ତଙ୍କୁ ଚକିତ କରିଦେଲେ ।

ଏଥି ପାଇଁ ଲୋକେ ତାଙ୍କୁ କହନ୍ତି 'ଗରିବ ଲୋକଙ୍କ ପାହା ଭରସା ।' ଓକିଲ ଭାବରେ ମଧୁବାବୁ ଖୁବ୍ ନାମ କମାଇ ଥିଲେ । ଆଇନ ବିଷୟରେ ଗଭୀର ଜ୍ଞାନ ପାଇଁକୁ ତାଙ୍କର ବିଚକ୍ଷଣ ବୁଦ୍ଧି ଯୋଗୁଁ ହାରିବା ମକଦମା ମଧ୍ୟ ଜିଣି ଯାଉ ଥିଲେ । ସେ ଥିଲେ ଗରିବର ବନ୍ଧୁ, ଅସହାୟର ସହାୟ । ସେ କାଳିଆ ଘୋଡାରେ ଚଢ଼ି କଚେରିକୁ ଯାଉଥିଲେ, ତାଙ୍କୁ ଆଇନର ଲଢ଼େଇରେ ହରାଇ ଦେବା ସେତେବେଳେ ଅନେକ ଲୋକଙ୍କର ସ୍ୱପ୍ନ ଥିଲା । ସେଥି ପାଇଁ ଅନେକଙ୍କ ମୁହଁରେ ଗୋଟିଏ ପଦ ଗୀତ ଶୁଣାଯାଉ ଥିଲା -

" କାଳିଆ ଘୋଡ଼ାରେ ଚଢ଼ିବି
ମଧୁ ବାବୁ ସଙ୍ଗେ ଲଢ଼ିବି । "



# ଦେଶ ପ୍ରାଣ ମଧୁସୂଦନ

ତାଙ୍କର ଆଉଗୋଟିଏ ବଡ଼ ଗୁଣ ଥିଲା ଦେଶ ପ୍ରେମ । ସେତେବେଳେ ଓଡ଼ିଶା ଖଣ୍ଡ ଖଣ୍ଡ ହୋଇ ଯାଇଥିଲା । ଓଡ଼ିଶାରୁ ଖଣ୍ଡେ ଥାଏ ବଙ୍ଗ ପ୍ରଦେଶରେ, ଖଣ୍ଡେ ଥାଏ ବିହାରରେ, ଖଣ୍ଡେ ଯୁକ୍ତ-ପ୍ରଦେଶରେ, ଆଉ ଖଣ୍ଡେ ମାନ୍ଦ୍ରାସରେ । ଏମିତି ଖଣ୍ଡ ଖଣ୍ଡ ହୋଇ ରହିଥିବାରୁ ଆମ ଓଡ଼ିଆଙ୍କ ଦୁଃଖ ଦୁର୍ଦ୍ଦଶା କଥା କେହି ବୁଝୁ ନଥିଲେ । ତେଣୁ ଓଡ଼ିଆମାନେ ବଡ଼ ଅଭାବ ଅସୁବିଧାରେ ଚଳୁଥିଲେ । ଏସବୁ ଦେଖି ମଧୁସୂଦନଙ୍କ ଛାତି ଦୁଃଖରେ ଫାଟି ଯାଉଥିଲା ।

ଦେଶବାସୀଙ୍କ ଦୁଃଖ ଦୂର କରିବାକୁ ସେ ସବୁବେଳେ ଚିନ୍ତା କରୁଥିଲେ । ଓଡ଼ିଆ ଭାଷା କହୁଥିବା ଲୋକେ ଗୋଟିଏ ପ୍ରଦେଶରେ ରହିବେ; ତେବେ ଯାଇ ସେମାନେ ନିଜ ଜାତିର ଟେକ ରଖି ପାରିବେ, ଏଇ କଥା ତାଙ୍କ ମନରେ ଖେଳୁଥାଏ ।

ଏଥିପାଇଁ ସେ କହୁଥିଲେ, "ଓଡ଼ିଶା ଓଡ଼ିଆଙ୍କର" ଖାଲି କଥାରେ ନୁହେଁ, କାମରେ ତାହା କରି ଦେଖାଇବା ଦରକାର । ଓଡ଼ିଶାର ସବୁ ଅଞ୍ଚଳ ଏକାଠି ହେବ । ତେବେ ଯାଇ ଓଡ଼ିଆ ଜାତି ତା'ର ପୂର୍ବ ଗୌରବ ଫେରି ପାଇବ ।

ତାଙ୍କ ପରି ଆଉ କେତେ ଜଣ ଦେଶପ୍ରେମୀ ମଧ ଏଇ କଥା

ଚିନ୍ତା କରୁଥିଲେ । ସେତେବେଳେ ମଧୁବାବୁ ଜାତୀୟ କଂଗ୍ରେସରେ ଯୋଗ ଦେଇଥାନ୍ତି । କିନ୍ତୁ ଓଡ଼ିଶା କଥା ତାଙ୍କ ପ୍ରାଣକୁ ଘାରୁ ଥାଏ । ଓଡ଼ିଶାର ରାଜଧାନୀ ବୋଲି କିଛି ନାହିଁ । ବଙ୍ଗ ପ୍ରଦେଶ ସାଙ୍ଗରେ ମିଶିରହୁ ଥିବାରୁ କଲିକତା ତାର ରାଜଧାନୀ । ବିଦେଶୀ ଇଂରେଜ ହେଲେ ଦେଶର ଶାସନକର୍ତ୍ତା ।

ଏହି ସମୟରେ ଖଲିକୋଟର ରାଜା ସାହେବ ଗଂଜାମର ଓଡ଼ିଆଙ୍କ ପାଇଁ "ଗଞ୍ଜାମ ଓଡ଼ିଆ ସଭା" ନାମରେ ଏକ ଅନୁଷ୍ଠାନ ଗଢ଼ିଥିଲେ । ଏହି ସଭାର ଅଧିବେଶନରେ ବହୁ ନେତୃସ୍ଥାନୀୟ ଓଡ଼ିଆ ଯୋଗ ଦେଉଥିଲେ । ସେଠାରେ ଓଡ଼ିଶାର ଦୁଃଖ ଦୁର୍ଦ୍ଦଶା କଥା ଆଲୋଚନା ହେଉଥିଲା । ଓଡ଼ିଶାର ସବୁ ଅଂଶକୁ କିପରି ଏକାଠି କରିବାକୁ ହେବ, ଏହା ସମସ୍ତଙ୍କର ଚିନ୍ତାର ବିଷୟ ହୋଇଥିଲା ।

୧୮୮୫ ମସିହାରେ ମଧୁସୂଦନ ବଙ୍ଗର ଗଭର୍ଣ୍ଣରଙ୍କୁ ଗୋଟିଏ ଚିଠି ଲେଖି ଓଡ଼ିଶାର ବିଚ୍ଛିନ୍ନାଞ୍ଚଳକୁ ଏକାଠି କରିବାକୁ ଜଣାଇଥିଲେ । ୧୯୦୦ ମସିହାରେ ସେ ଲର୍ଡ଼ କର୍ଜନଙ୍କୁ ସାକ୍ଷାତ କରିଥିଲେ । ତାଙ୍କ ନିକଟରେ ମଧ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବାକୁ ଦାବି କରିଥିଲେ ।

୧୯୦୩ ମସିହାରେ 'ଗଞ୍ଜାମ ଓଡ଼ିଆ ସଭା'ର ନାଁ ବଦଳାଇ 'ଉତ୍କଳ ସମ୍ମିଳନୀ' ରଖିଥିଲେ । ଏହି ସମ୍ମିଳନୀ ୧୯୨୦ ମସିହା

ଯାଏ ଓଡ଼ିଶାରେ ବେଶ କାମ କରୁଥିଲା । ଏଥିରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ, ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି ସଂପର୍କରେ ଆଲୋଚନା ହେଉଥିଲା । ଓଡ଼ିଶାର ସବୁ ଅଂଚଳର ମୁଖିଆ ଓଡ଼ିଆ ଲୋକେ ଏ ସମ୍ମିଳନୀରେ ଯୋଗ ଦେଉଥିଲେ ।

ଏହି ଉତ୍କଳ ସମ୍ମିଳନୀ ଥିଲା ଓଡ଼ିଆ ଜାଗରଣର ମିଳନ ପୀଠ, ପ୍ରତିବର୍ଷ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଏହାର ଅଧିବେଶନ ବସୁଥିଲା । ବିଭିନ୍ନ ଅଞ୍ଚଳର ପ୍ରତିନିଧିମାନେ ଏହି ସମ୍ମିଳନୀରେ ଯୋଗ ଦେଇ ନିଜ ନିଜ ଅଞ୍ଚଳର ସମସ୍ୟା ବିଷୟରେ ଆଲୋଚନା କରୁଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ସରକାରଙ୍କ ପାଖରେ ଦାବି ଉପସ୍ଥାପିତ କରୁଥିଲେ । ମଧୁବାବୁ ଥିଲେ ଉତ୍କଳ ସମ୍ମିଳନୀର ଅନ୍ୟତମ ବିଶିଷ୍ଟ ନେତା । ଏ ସମ୍ମିଳନୀର ମହତ୍ୱ ସମ୍ପର୍କରେ ସେ ଏକ କବିତାରେ ଲେଖିଥିଲେ -

''ଏହି ସମ୍ମିଳନୀ ଜାତି ପ୍ରାଣ ସିନ୍ଧୁ
କୋଟି ପ୍ରାଣ ବିନ୍ଦୁ ଧରେ ,
ତୋର ପ୍ରାଣ ବିନ୍ଦୁ ମିଶାଇ ଦେ'ଭାଇ
ତେଇଁ ପଡି ସିନ୍ଧୁ ନୀରେ ,''

ଏଇ ସମ୍ମିଳନୀହିଁ ଓଡ଼ିଆଙ୍କ ପ୍ରାଣରେ ଦେଶ ପ୍ରୀତି ଭରି ଦେଉଥିଲା । ମଧୁସୂଦନ ଏହି ସମ୍ମିଳନୀରେ ପଦେ ଗୀତ ବୋଲିଥିଲେ -

" ମାଆ ମାଆ ବୋଲି କେତେ ମୁଁ ଡାକିଲି
ମା'କୁ ପାଇଲି ନାହିଁ
ଭାଇ ଭାଇ ବୋଲି କେତେ ମୁଁ ଖୋଜିଲି
ନ ଦେଲେ ଉତ୍ତର କେହି । "

ଦେଶ ପ୍ରାଣ ମଧୁସୂଦନ କାହା ଉଦ୍ଦେଶ୍ୟରେ ଏ ଗୀତ ଲେଖିଥିଲେ ? ତାଙ୍କର ମାଆ କିଏ , ଭାଇ କିଏ ? ଉତ୍କଳ ଜନନୀ ହେଉଛନ୍ତି ସେଇ ମାଆ, ଯାହାକୁ ସେ 'ମାଆ ମାଆ' ବୋଲି ଡାକୁଛନ୍ତି । କିନ୍ତୁ ସେ କଣ ମାଆ'କୁ ପାଇଲେ ? ଯେଉଁ ଓଡ଼ିଶା ପ୍ରଦେଶ ଖଣ୍ଡ ଖଣ୍ଡ ହୋଇ ପଡ଼ିଛି ତା'ର ପ୍ରାଣ ଆସିବ କୁଆଡୁ ? 'ସେ ମାଆ'କୁ ପାଇଲେ ନାହିଁ । ବ୍ୟାକୁଳ ହୋଇ 'ଭାଇ ଭାଇ' ବୋଲି ଡାକିଲେ । କେହି ଉତ୍ତର ଦେଲେ ନାହିଁ । ଜାତୀୟ ଏକତାର ଘୋର ଅଭାବ ଥିଲା । ଓଡ଼ିଆ ଭାଷାଭାଷୀ ଯେ ଯେଉଁଠି ଥାଆନ୍ତୁ ପଛେ, ଆମେ ଯେ ' ଭାଇ ଭାଇ ', ଏ ଧାରଣା ଲୋକଙ୍କ ମନରେ ନଥିଲା । ଆମେ ଏକ ଉତ୍କଳ ମାଆର ସନ୍ତାନ ବୋଲି ଲୋକଙ୍କ ମନରେ ପଡିଆରା ନଥିଲା । ମଧୁସୂଦନ ସେମାନଙ୍କୁ ଲକ୍ଷ୍ୟ କରି ଲେଖିଥିଲେ " ତୁ ପରା ବୋଲାଉ ଉତ୍କଳ ସନ୍ତାନ" । ଏହି କଥା ପଦକୁ ଶୁଣି ଲୋକେ ନିଜର ପରିଚୟ ଜାଣିଲେ । ଉତ୍କଳ ଜନନୀଙ୍କ ପାଇଁ ତାଙ୍କ ପ୍ରାଣରେ ମମତା, ଭକ୍ତି ଜାଗିଲା ।

## ଦେଶପ୍ରେମୀ କବି

ଦରମଲା ଓଡ଼ିଆଙ୍କ ପ୍ରାଣରେ ଦେଶ ପ୍ରୀତି ସୃଷ୍ଟି କରିବା ପାଇଁ ସେ ସରଳ ଭାଷାରେ କବିତା ଲେଖିଥିଲେ । ସେଥିରୁ ଗୋଟିଏ କବିତା ହେଉଛି -

'' ଉଠରେ ଉଠରେ ଉତ୍କଳ ସଂତାନ
ଉଠିବୁ ତୁ କେତେଦିନେ
ପୂରୁବ ଗୌରବ ପୂରୁବ ସାହସ
ପଡ଼ିବକି କେବେ ମନେ
ତୋ ପୂର୍ବ ପୁରୁଷ ଜୟ କରିଥିଲେ
ଗଙ୍ଗାଠାରୁ ଗୋଦାବରୀ,
ତାଙ୍କରି ଔରସେ ଜନମ ହୋଇତୁ
କେଉଁ ଗୁଣେ ତାଙ୍କ ସରି ?''

ଏଇ କବିତା ଓଡ଼ିଶା ବାସୀଙ୍କୁ ସେମାନଙ୍କର ଆତ୍ମପରିଚୟ ଦେଉଥିଲା ।

# ଓଡ଼ିଶାର ଶିଳ୍ପ ଓ ମଧୁସୂଦନ

ମଧୁସୂଦନ ଇଂଲଣ୍ଡ ଓ ଜର୍ମାନ ଭ୍ରମଣରେ ଯାଇଥିଲେ । ସେଠାରେ ସେ ଦେଖିଲେ ଲୋକେ କଳ କାରଖାନା ଖୋଲି ସୁଖରେ ଅଛନ୍ତି । ଆମ ଓଡ଼ିଆ ଭାଇମାନେ ପର ଦୁଆରେ କୁଲି କାମ କରି ଜୀବିକା ଅର୍ଜନ କରୁଛନ୍ତି । ଏଇ କଥାକୁ ମନରେ ରଖି ସେ ଶିଳ୍ପ ପ୍ରତିଷ୍ଠା କଥା ଚିନ୍ତାକଲେ ।

ସେ ପ୍ରଥମେ ଆରମ୍ଭ କଲେ କୁଟୀର ଶିଳ୍ପ । ତାଙ୍କରି ଘରେ ଆରମ୍ଭ ହେଲା ସୁନା ରୂପାର ତାରକସି କାମ । ସେଠାରେ ଲୋକମାନଙ୍କୁ ତାଲିମ ଦିଆଗଲା । ଓଡ଼ିଆ କାରିଗରମାନେ କାଠ କାମ, ଶିଙ୍ଗ କାମମାନ ଆରମ୍ଭ କଲେ । କୁଟୀର ଶିଳ୍ପ ସହିତ କଳ କାରଖାନା ବସାଇବା ଥିଲା ମଧୁବାବୁଙ୍କ ପ୍ରଧାନ ଲକ୍ଷ୍ୟ "ଉତ୍କଳ ଟ୍ୟାନେରୀ" ନାମରେ ସେ ଗୋଟିଏ ଜୋତା କାରଖାନା ବସାଇ ଥିଲେ । ଜାତିର ପିତା ମହାତ୍ମା ଗାନ୍ଧୀ ଯେତେବେଳେ ଓଡ଼ିଶାକୁ ଆସିଥିଲେ ସେ ମଧୁସୂଦନଙ୍କ ଜୋତା କାରଖାନା ଦେଖିଥିଲେ । ତାଙ୍କ କାମକୁ ପ୍ରଶଂସା କରିଥିଲେ । ସେ କହୁଥିଲେ 'ମୋ ଭାଇମାନେ ଭୋକ ଉପାସରେ ନ ରହନ୍ତୁ, କାମ କରି ପେଟ ପୋଷନ୍ତୁ ।"

ଉତ୍କଳ ଟ୍ୟାନେରୀ ବେଶିଦିନ ଚାଲିପାରିଲା ନାହିଁ । ମଧୁସୂଦନ ବଡ଼ ଜିଦ୍‌ଖୋର ଥିଲେ । ଜୋତା ତିଆରି ଚମଡ଼ାରେ ତ୍ରୁଟି ଦେଖିଲେ ସେ ବିଡ଼ା ବିଡ଼ା ଚମଡା ଫୋପାଡ଼ି ଦେଉଥିଲେ । ସେ କହୁଥିଲେ, ' କେହି ଯେମିତି ନ କହୁ ଓଡ଼ିଆ ଜାତି ଖରାପ ଜିନିଷ ତିଆରି କରୁଛି । ପଇସା ଠକି ନଉଚି ।'' ଏ ବିଷୟରେ ସେ କହିଛନ୍ତି, '' ଦୁନିଆରେ ଧନ ବଡ଼ ନୁହେଁ, ମାନ ବଡ଼ । ଧନ ପାଇଁ ଯିଏ ମାନସମ୍ମାନକୁ ଭୁଲି ଯାଏ; ସେ ହୀନ । ''

ଜଣେ ସାହେବ 'ଉତ୍କଳ ଟ୍ୟାନେରୀ' କାରଖାନାରୁ ଲକ୍ଷ ଲକ୍ଷ ଟଙ୍କାର ଜୋତା କିଣିବାକୁ ଚାହିଁଲେ । ଜୋତା ପାଇଁ ଅର୍ଡର ଦେବାବେଳେ ସେ କହିଲେ, ଜୋତାରେ ଉତ୍କଳ ଟ୍ୟାନେରୀ ମୋହର ରହିବ ନାହିଁ ।

କାରଣ, ସେ ସାହେବଙ୍କର ମଧ ଗୋଟିଏ ଯୋତା କାରଖାନା ଥିଲା । ତାହା ଅଚଳ ଅବସ୍ଥାରେ ଥିଲା । ସାହେବ ଚାହୁଁଥିଲେ ଉତ୍କଳ ଟ୍ୟାନେରୀ ପରିବର୍ତ୍ତେ ସେ ତାଙ୍କ ନିଜ କଂପାନୀର ମୋହର ମାରି ଜୋତା ବିକ୍ରି କରିବେ ।

ମଧୁବାବୁ ଏଥିରେ ରାଜି ହୋଇ ନଥିଲେ । ସାହେବଙ୍କୁ ଆଉ ଜୋତା ବିକ୍ରି କରାଗଲା ନାହିଁ । ଜାତିର ମାନ ମହତକୁ କିଏ ଲାଭ ପାଇଁ ବଳି ଦେବ ?

ଗୋଟିଏ ବକ୍ତୃତା ଦେବା ବେଳେ ସେ କହିଥିଲେ ,'' ଲୋକେ

କହନ୍ତି ଓଡ଼ିଶା ଗରିବ । ମୁଁ କହେ କଦାପି ନୁହେଁ । ବର୍ତ୍ତମାନ କଲିକତା ନାଗପୁର ପରି ସ୍ଥାନରେ କଳ କାରଖାନାରେ ଲକ୍ଷ ଲକ୍ଷ ଓଡ଼ିଆ ଲୋକ କାମ କରୁଛନ୍ତି । ଏହାର ଅର୍ଥ ଓଡ଼ିଆ ଶ୍ରମିକମାନଙ୍କ ଶ୍ରମ ଅନ୍ୟମାନେ ବ୍ୟବହାର କରି ବଡ଼ଲୋକ ହେଉଛନ୍ତି ।''

ସେ ଆମ ଓଡ଼ିଆ ଜାତିକୁ ଠିକ୍ ଭାବରେ ଚିହ୍ନିଥିଲେ । ସମସ୍ତଙ୍କୁ ପ୍ରତିଦିନ ଦେଶପାଇଁ ଦଶମିନିଟ୍ ଭାବିବା ପାଇଁ କହୁଥିଲେ । ସେ ଦେଶ ପାଇଁ ବହୁତ ତ୍ୟାଗ କରିଛନ୍ତି । ଓକିଲାତିରୁ ଯାହା ରୋଜଗାର କରୁଥିଲେ ତାକୁ ଦେଶ କାମରେ ଲଗାଉ ଥିଲେ । ଖାଲି ସେତିକି ନୁହେଁ ସେ ଋଣ ନେଇ ମଧ ଦେଶ ପାଇଁ କାମ କରୁଥିଲେ । ଦେଶ ପାଇଁ ତାଙ୍କ ତ୍ୟାଗର ବହୁତ ଉଦାହରଣ ଅଛି । ସେ ବିହାର-ଓଡ଼ିଶା ପ୍ରଦେଶର ଗୋଟିଏ ମନ୍ତ୍ରୀଥିଲେ । ଦେଶୀୟ ଲୋକେ ସେତେବେଳକୁ ମନ୍ତ୍ରୀହେବା ବଡ଼ ଗୌରବର କଥା ବୋଲି ଭାବୁଥିଲେ । ମଧୁସୂଦନ ଦେଖିଲେ ସେଇ ବିଭାଗରେ ଚେୟାରମ୍ୟାନ ଠାରୁ ଆରମ୍ଭ କରି କର୍ମଚାରୀଙ୍କ ପର୍ଯ୍ୟନ୍ତ ଆଉ ଯୋଉମାନେ କାମ କରୁଛନ୍ତି ସେମାନେ କେହି ଦରମା ନେଉନାହାନ୍ତି । ମଧୁସୂଦନ ଏହା ଜାଣି ଲାଟ ସାହେବଙ୍କୁ ଲେଖିଲେ ସେ, ମଧ ବିନା ଦରମାରେ କାମ କରିବେ । କିନ୍ତୁ ଲାଟ ଏହା ମଂଜୁର କରି ନଥିଲେ । ତେଣୁ ମଧୁସୂଦନ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଥିଲେ ।

ସେ ଯାହା ରୋଜଗାର କରୁଥିଲେ, ଦେଶପାଇଁ ବ୍ୟୟ କରୁଥିଲେ । ସେଥିପାଇଁ ସେ ଘୋର ଅର୍ଥାଭାବର ସମ୍ମୁଖୀନ ହେଉଥିଲେ । ତାଙ୍କ ଘରେ ରାଜା ମହାରାଜା ଓ ଧନୀ ଜମିଦାରମାନେ ଅତିଥି ହେଉଥିଲେ । ସେ ବଡ଼ ଆଡ଼ମ୍ବର ସହକାରେ ତାଙ୍କ ଅତିଥିଙ୍କୁ ଖିଆପିଆ କରାଉଥିଲେ। ସେ କହୁଥିଲେ, ''ଆଲୋ ସଖି, ଆପଣା ମହତ ଆପେ ରଖି ।''

## ନାରୀଶିକ୍ଷା ପାଇଁ ମଧୁବାବୁଙ୍କ ଅବଦାନ

ସମାଜର ବିକାଶରେ ନାରୀମାନଙ୍କ ଭୂମିକା ଖୁବ୍ ଗୁରୁତ୍ୱପୂର୍ଣ୍ଣ । ମଧୁବାବୁ ଜାଣିଥିଲେ ନାରୀମାନେ ଅପାଠୋଇ ହୋଇ ରହିଲେ ଓଡିଆ ଜାତି ଉପରକୁ ଉଠି ପାରିବ ନାହିଁ। ସେଥିପାଇଁ ସେ ଓଡ଼ିଶାରେ ନାରୀ ଶିକ୍ଷାର ବିକାଶ ପାଇଁ ମନପ୍ରାଣ ଢାଳି ଦେଇଥିଲେ ।

ସେଥିପାଇଁ ସେ କଟକରେ ଗୋଟିଏ ବାଳିକା ବିଦ୍ୟାଳୟ ବସାଇଥିଲେ । ସେଇ ବାଳିକା ବିଦ୍ୟାଳୟର ନାଁ ରେଭେନ୍‌ସା ବାଳିକା ବିଦ୍ୟାଳୟ । ଏଇ ବିଦ୍ୟାଳୟ ବସାଇବା ପାଇଁ ସେ କୋଡ଼ିଏ ହଜାର ଟଙ୍କା ନିଜେ ଦେଇଥିଲେ ।

ଝିଅମାନେ ଅଧିକ ସଂଖ୍ୟାରେ ପାଠ ପଢ଼ିଲେ ସମାଜର ଉନ୍ନତି ହେବ । ଏଥି ପାଇଁ ଓଡ଼ିଶାରେ ସର୍ବତ୍ର ବାଳିକା ବିଦ୍ୟାଳୟ ଖୋଲାଯାଉ ବୋଲି ସେ ତାଙ୍କର ପାଳିତା କନ୍ୟାଦୁହିଙ୍କୁ କହୁଥିଲେ ।

ସୁଧାଂଶୁବାଳା ଓକିଲାତି ପାଶ୍ କରିଥିଲେ । କିନ୍ତୁ ସେତେବେଳେ ମହିଳାମାନଙ୍କୁ କୋର୍ଟରେ ଓକିଲାତି କରିବାର ଅଧିକାର ମିଳି ନଥିଲା । ଏଥିପାଇଁ ମଧୁସୂଦନ ଖୁବ୍ ଲଢ଼େଇ କରିଥିଲେ । ସୁଧାଂଶୁବାଳାଙ୍କୁ କୋର୍ଟ କଚେରୀରେ ଆଇନ ବ୍ୟବସାୟ କରିବାକୁ ଅନୁମତି ମିଳିଥିଲା ।



୧୯୨୧ ମସିହାର କଥା । ମହିଳାମାନେ ମଧ ଭୋଟ ଅଧିକାର ପାଇ ନଥାନ୍ତି । କିନ୍ତୁ ସାକ୍ଷର ପୁରୁଷଙ୍କୁ ଭୋଟ ଅଧିକାର ମିଳି ସାରିଥାଏ ।

ମଧୁସୂଦନ ଦେଶରେ ନାରୀ ପୁରୁଷଙ୍କର ସମାନ ଭୋଟ ଅଧିକାର ପାଇଁ ଲଢ଼ିଥିଲେ । ତାଙ୍କ ଚେଷ୍ଟା ଫଳରେ ସାକ୍ଷର ମହିଳାଙ୍କୁ ଭୋଟ ଅଧିକାର ମିଳିଲା । ଏହା ଥିଲା ମଧୁସୂଦନଙ୍କର ଏକ ବଡ଼ ବିଜୟ ।

ନାରୀ ଶିକ୍ଷା ପାଇଁ ମଧୁବାବୁଙ୍କର ସବୁ ଠାରୁ ବେଶୀ ଆଗ୍ରହ ଥିଲା । ସେଥି ପାଇଁ ତାଙ୍କ ମୃତ୍ୟୁପରେ ତାଙ୍କ କଟକ ବାସଭବନକୁ ଏକ ମହିଳା କଲେଜରେ ରୂପାନ୍ତରିତ କରା ଯାଇଛି । ତାଙ୍କ ପାଳିତ କନ୍ୟାଙ୍କ ନାମ ଅନୁସାରେ ଏହି ମହାବିଦ୍ୟାଳୟର ନାମ ରଖାଯାଇଛି ''ଶୈଳବାଳା ମହିଳା ମହାବିଦ୍ୟାଳୟ ''

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ମଧୁବାବୁଙ୍କ ଦାନ ଅତୁଳନୀୟ । ତାଙ୍କ ନାଁ ରେ କଟକଠାରେ ମଧୁସୂଦନ ଆଇନ୍ କଲେଜ୍ ହୋଇଛି । କଟକର ଖପୁରିଆରେ ଥିବା ଶିଳ୍ପ ଅଂଚଳକୁ ତାଙ୍କର ନାମ ଅନୁସାରେ 'ମଧୁ ପାଟଣା' ରଖାଯାଇଛି ।

## ହେ ଚିର ନମସ୍ୟ

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଓ ସ୍ୱାଧୀନତା ଆନ୍ଦୋଳନ - ଏହାହିଁ ଥିଲା ସେତେବେଳେ ଦେଶର ଦୁଇଟି ଜ୍ୱଳନ୍ତ ସମସ୍ୟା । ଉତ୍କଳ ସମ୍ମିଳନୀ ଜରିଆରେ ବିଚ୍ଛିନ୍ନାଞ୍ଚଳ ମିଶ୍ରଣ ପାଇଁ ମଧୁବାବୁ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ସେ ମଧ୍ୟ ସ୍ୱାଧୀନତା ଆନ୍ଦୋଳନରେ ଯୋଗଦାନ କରିଥିଲେ ।

ସେ ଥିଲେ ଓଡ଼ିଶାର ମହାନ୍ ଜାତିୟବାଦୀ ନେତା । ସେ ନିଜ ମାଆଙ୍କ ଠାରୁ ଶିଖିଥିଲେ - 'ଆଲୋ ସଖୀ, ଆପଣା ମହତ ଆପେ ରଖ୍'।-ଓଡ଼ିଆ ଲୋକେ ଯଦି ନିଜର ମାନ ମହତ ନିଜେ ନରଖନ୍ତି, ତା'ହେଲେ ସେମାନେ କେବେ ହେଲେ ଅନ୍ୟମାନଙ୍କର ସମକକ୍ଷ ହୋଇ ପାରିବେ ନାହିଁ । ନିଜ କାମରେ, କଥାରେ, ଲେଖାରେ ସେ ଏହି କଥା ଓଡ଼ିଆ ଲୋକଙ୍କୁ ବୁଝାଇଥିଲେ ।

୧୯୩୬ ମସିହାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଗଠିତ ହେଲା । ମଧୁବାବୁଙ୍କ ସ୍ୱପ୍ନ ସଫଳ ହେଲା । କିନ୍ତୁ ସେତେବେଳକୁ ସେ ଆଉ ବଞ୍ଚି ନଥିଲେ । ୧୯୩୪ ମସିହା ଫେବ୍ରୁୟାରୀ ମାସ ୪ ତାରିଖ ଦିନ ତାଙ୍କର ପରଲୋକ ହୋଇ ଯାଇଥିଲା ।

ସେ ଆଜି ନାହାନ୍ତି, କିନ୍ତୁ ତାଙ୍କର ଆଦର୍ଶ ଆଜି ସୁଦ୍ଧା ଓଡ଼ିଆ ଜାତିକୁ ଉଦ୍‌ବୁଦ୍ଧ କରୁଛି । ତାଙ୍କର ସେହି ପଦୁଟିଏ କଥା ଆଜି ବି ଲୋକେ ମନେ ପକାଉଛନ୍ତି '' ଦୁନିଆରେ ଧନ ବଡ଼ ନୁହେଁ, ବଡ଼ ହେଉଛି ଦେଶ ଓ ଜାତିର ମାନ । ଧନ ପାଇଁ ସେ ନିଜ ମାନ ସମ୍ମାନକୁ ଭୁଲି ଯାଏ, ସେ ହୀନ ମଣିଷ ।''

